# କବି ବିଳାପ

କବି ବିଲ୍‌ହଣ ବିରଚିତ

"ଚୌରପଞ୍ଚାଶିକା" ରୁ

ଅନୂଦିତ

ଶ୍ରୀ ଅଭିନ୍ନଚନ୍ଦ ଦାଶ, ଏମ୍. ଏ.

ଉତ୍ସର୍ଗ

ପ୍ରାଣୀତତ୍ତ୍ୱ ଅଧ୍ୟାପକ ସାହିତ୍ୟପ୍ରେମୀ ବନ୍ଧୁ

**ଶ୍ରୀ କୀର୍ତ୍ତନଚନ୍ଦ୍ର ପାତ୍ରଙ୍କୁ**

# ଆଭାଷ

ଯେଉଁଠାରେ ସ୍ରଷ୍ଟା ଢାଳି ଦେଇଛନ୍ତି ଅଜସ୍ର ସୌନ୍ଦର୍ଯ୍ୟର ପସରା, ପ୍ରବାହିତ କରିଛନ୍ତି ସୌନ୍ଦର୍ଯ୍ୟର ଅମନ୍ଦମନ୍ଦାକିନୀ, ସେହି ସାର୍ବକାଳୀନ ସୁଷମାର ବେଳାଭୂମି କାଶ୍ମୀର ଦେଶରେ କବି ବିଲ୍ହଣଙ୍କ ଜନ୍ମ । କାଶ୍ମୀର ଦେଶ କେବଳ ଲୀଳାମୟୀ ପ୍ରକୃତିର କ୍ରୀଡ଼ାସ୍ଥଳୀ ନୁହେଁ; ତାର ସେହି ପରମ ରମଣୀୟ ସୁଷମାକୁ ଉପଭୋଗ କ୍ଷମ କରାଇବା ଏବଂ କବିତାର ସେହି ଅନବଦ୍ୟ ସୁଷମାର ଚିରସୁନ୍ଦର ଛବିକୁ ରୂପ ଦେବା ପାଇଁ ଜନ୍ମ ଦେଇଛି ଅନେକ ଅତଳସ୍ପର୍ଶୀ ପ୍ରତିଭାଯୁକ୍ତ କବିଙ୍କୁ । ସେମାନଙ୍କ ଭିତରୁ ଉଲ୍ଲେଖଯୋଗ୍ୟ କବି ହେଉଛନ୍ତି – ବିଲ୍‌ହଣ, କଲହଣ, କ୍ଷେମେନ୍ଦ୍ର, ଶିବସ୍ୱାମୀ, ରାଜାନକ ରତ୍ନାକର, ଏବଂ ମଂଖକ । ଏହା ବ୍ୟତୀତ କାଶ୍ମୀର ମଧ୍ୟ ଜନ୍ମ ଦେଇଛି ଅଲୌକିକ ପ୍ରତିଭାସମ୍ପନ୍ନ ସମାଲୋଚକ ସମ୍ମଟଭଟ୍ଟ, ଭଟ୍ଟଲୋଲ୍ଲଟ, ଭଟ୍ଟନାୟକ ତଥା ଅଭିନବ ଗୁପ୍ତ ଆଦିଙ୍କୁ ।

ବିଲ୍‌ହଣଙ୍କ ପିତାଙ୍କର ନାମ ଜ୍ୟେଷ୍ଠକଳଶ ତଥା ମାତାଙ୍କ ନାମ ନାଗଦେବୀ । ଇଷ୍ଟରାମ ଓ ଆନନ୍ଦ ନାମକ ତାଙ୍କର ଦୁଇଟି ଭାଇ ଥିଲେ । ବିଲ୍‌ହଣ କୌଣସି ରାଜାନୁଗ୍ରହ ଲାଭ କରିବା ଆଶାରେ ଉତ୍ତର

ଭାରତର କାଶୀ, ପ୍ରୟାଗ, ମଥୁରା ପ୍ରଭୃତି ନାନା ସ୍ଥାନ ଭ୍ରମଣ କରି ଦକ୍ଷିଣ ଭାରତର କଲ୍ୟାଣ ନଗରରେ ପ୍ରବେଶ କଲେ । ସେଠାରେ ଚାଲୁକ୍ୟ ବଂଶର ଗୁଣଗ୍ରାହୀ ନରେଶ ଷଷ୍ଠ ବିକ୍ରମାଦିତ୍ୟ (୧୦୭୬ ରୁ ୧୧୨୭ ) କବିଙ୍କୁ ସାଦର ସମଭ୍ୟର୍ଥନା ଜଣାଇ ରାଜକବି ପଦରେ ସମ୍ମାନିତ କଲେ । ବିଲ୍ହଣ, ନରପତିଙ୍କର ଆଦର ଓ ଉତ୍ସାହ ଲାଭକରି ବିକ୍ରମାଦିତ୍ୟଙ୍କୁ କାବ୍ୟର ନାୟକ ରୂପେ ଗ୍ରହଣ କରି "ବିକ୍ରମାଙ୍କଦେବ ଚରିତ" ନାମକ ଐତିହାସିକ କାବ୍ୟ ରଚନା କରିଥିଲେ । ସେ 'ବୈଦର୍ଭୀ' ଶୈଳୀକୁ ଅନୁସରଣ କରୁଥିଲେ । ତାଙ୍କର ରଚନା ସରଳ, ତରଳ ଓ ରସମୟ; ତେଣୁ ତାହା ପାଠକର ହୃଦୟତନ୍ତ୍ରୀରେ ମଧୁର ମୂର୍ଚ୍ଛନା ତୋଳିଥାଏ ।

ବିଲ୍ହଣକୃତ "ଚୌରପଞ୍ଚାଶିକା' ସଂସ୍କୃତ ସାହିତ୍ୟରେ ଶୃଙ୍ଗାରରସାତ୍ମକ ଶ୍ରେଷ୍ଠ ଗୀତିକବିତା ( Erotic Lyric ) ଭାବରେ ବିବେଚିତ ହୋଇଛି । ଏହି 'ଚୌରପଞ୍ଚାଶିକା' ଖଣ୍ଡ-କାବ୍ୟର ତିନୋଟି ସଂସ୍କରଣ ଦେଖିବାକୁ ମିଳେ । ପ୍ରତ୍ୟେକ ସଂସ୍କରଣରେ ବିଶେଷ ଭାବରେ ପ୍ରକ୍ଷିପ୍ତ ଶ୍ଳୋକ ଦେଖାଯାଏ । ଉକ୍ତ ଖଣ୍ଡକାବ୍ୟରେ ଲେଖକନିର୍ଦ୍ଧାରଣ କରିବାରେ ସନ୍ଦେହ ହୁଏ । ଯାହାହେଉ, କାଶ୍ମୀରକବି ବିଲ୍ହଣଙ୍କୁ 'ଚୌରପଞ୍ଚାଶିକାର' ଲେଖକ ବୋଲି ଧରାଯାଇଛି ।

କିମ୍ବଦନ୍ତୀରୁ ଜଣାପଡ଼େ କୌଣସି ଏକ ରାଜକନ୍ୟାଙ୍କୁ ପାଠ ପଢ଼ାଉଥିବା ସମୟରେ କବି ବିଲ୍ହଣ ସେହି ରାଜ ନନ୍ଦିନୀଙ୍କର ପ୍ରଣୟର ଅନୁବନ୍ଧନରେ ଆବଦ୍ଧ ହୋଇଥିଲେ । ଏହା ହିଁ ଖଣ୍ଡକାବ୍ୟର ସାରାଂଶ । ଶଂସିତ ରାଜକନ୍ୟାଙ୍କର ନାମ କେଉଁ କେଉଁ ସଂସ୍କରଣରେ ଶଶିକଳା, ଯାମିନୀପୂର୍ଣ୍ଣ ତିଲକା, ଚନ୍ଦ୍ରକଳା, ଚନ୍ଦ୍ରଲେଖା ଓ ବିଦ୍ୟା

ଏହିପରି ଉଲ୍ଲେଖ ହୋଇଛି । ଗୋଟିଏ ସଂସ୍କରଣ ଉପରେ ବିଶ୍ୱାସ ରଖି ଗଳ୍ପଟିକୁ କହିବାକୁ ଗଲେ—

ଅନ୍ହିଲ ନାମକ ଦେଶର ସୁଦକ୍ଷ ନୃପତିଙ୍କର ଚନ୍ଦ୍ରକଳା ସଦୃଶ ଶଶିକଳା ନାମରେ ଗୋଟିଏ ପରମା ସୁନ୍ଦରୀ କନ୍ୟା ଥିଲେ । ଶଶିକଳା ଅନେକ ବିଦ୍ୟାରେ ନିପୁଣା; କିନ୍ତୁ କାବ୍ୟ, କବିତା, ଶାସ୍ତ୍ରପୁରାଣାଦିରେ ଅନଭିଜ୍ଞା ଥିଲେ । ଦିନେ ସେହି-ଠାର ରାଜପୁରୋହିତ ଜଣେ ରୂପବାନ୍ ଯୁବକକୁ ସଙ୍ଗରେ ଧରି ରାଜାଙ୍କ ନିକଟରେ ପହଞ୍ଚିଲେ । ପୁରୋହିତ ଆଗନ୍ତୁକଙ୍କର ପରିଚୟ ପ୍ରଦାନ କରିବାକୁ ଯାଇ କହିଲେ, "ଏ ହେଉଛନ୍ତି ଶ୍ରୀସମ୍ପନ୍ନ କାଶ୍ମୀର ଦେଶର ପ୍ରଖ୍ୟାତନାମା କବି ବିଲ୍ହଣ । କବି କାବ୍ୟ, ନାଟକଠାରୁ ଆରମ୍ଭ କରି ସକଳ ଶାସ୍ତ୍ରରେ ଧୁରନ୍ଧର । କବି ବିଲ୍ହଣ କେବଳ ଆମ ଜେମାଙ୍କର ଶିକ୍ଷକ ପଣକୁ ଭାଜନ ।" ରାଜା ପରମ ପ୍ରୀତ ହୋଇ କବିଙ୍କର ରହିବା ସକାଶେ ସକଳ ସୁବିଧା କରିବା ପାଇଁ ବୃଦ୍ଧ ପୁରୋହିତଙ୍କୁ ନିର୍ଦ୍ଦେଶ ଦେଲେ ।

କିନ୍ତୁ ରାଜା ଏହା ପରେ ଏକାନ୍ତରେ ଭାବିଲେ—ନିଜର କନ୍ୟା ହେଉଛି ରୂପବତୀ, ଯୁବତୀ ଓ କନ୍ୟାର ଶିକ୍ଷକ ହେଉଛନ୍ତି କଳ୍ପନା-ବିଳାସୀ କବି । ସେହେତୁ ରାଜ୍ୟର ପ୍ରଜାବର୍ଗ ଉଭୟଙ୍କୁ ସନ୍ଦେହ-ଚକ୍ଷୁରେ ଦେଖି ଅପପ୍ରଚାରରେ ଲିପ୍ତ ହୋଇ ପାରନ୍ତି । ତେଣୁ ଲୋକାପବାଦକୁ ଡରି ରାଜା ପ୍ରଚାର କଲେ— ରାଜନନ୍ଦିନୀ ବିଷମ ବ୍ୟାଧିରେ ପୀଡ଼ିତା ତଥା ଶିକ୍ଷକ ବିଲ୍ହଣ ହେଉଛନ୍ତି ଜନ୍ମରୁ ଅନ୍ଧ । ରାଜା ଶଶିକଳାକୁ ଡାକି କହିଲେ—"ଶଶିକଳା ! ତୋର ଶିକ୍ଷକ ହେଉଛନ୍ତି ଅନ୍ଧ; ତେଣୁ ତୁ ତାଙ୍କର ମୁଖ ଦର୍ଶନ କରିବୁ ନାହିଁ ।" ଶଶିକଳା ରାଜାଙ୍କ କଥାକୁ ମାନିନେଲେ ଏବଂ ଗୁରୁଙ୍କ ମୁଖଦର୍ଶନ

ନ କରିବା ପାଇଁ ଶପଥ ଗ୍ରହଣ କଲେ । ତାପରେ ରାଜା କବି ବିଲହ୍ଲଣଙ୍କୁ ମଧ୍ୟ କହିଲେ ଯେ କନ୍ୟା ଶଶିକଳା ବିଷମ ବ୍ୟାଧିରେ ପୀଡ଼ିତା ଅଛନ୍ତି ।"

ରାଜ ନନ୍ଦିନୀ ଶଶିକଳାଙ୍କର ମଣିମୟ ଅଟ୍ଟାଳିକା; ଗୃହର ଅଭ୍ୟନ୍ତର ସୁବାସିତ ସୁଷମ କୁସୁମ ଓ ଆଗୁରୁ କସ୍ତୁରୀ ଧୂପର ସରସ ସୌରଭରେ ନିରନ୍ତ ସୁରଭିତ । କବି ସେହି ଅଟ୍ଟାଳିକାରେ ରାଜକନ୍ୟାଙ୍କୁ ପାଠ ପଢ଼ାଇବା ଆରମ୍ଭ କଲେ । ରାଜାଙ୍କ ନିର୍ଦ୍ଦେଶରେ ଗୁରୁ ଓ ଛାତ୍ରୀଙ୍କ ମଧ୍ୟରେ ରଖାଗଲା ଖଣ୍ଡିଏ ପର୍ଦା । ପର୍ଦାର ଅନ୍ତରାଳରୁ କବି ଶଶିକଳାଙ୍କୁ ପଢ଼ାଇବାକୁ ଲାଗିଲେ । ଶଶିକଳା କ୍ରମେ କ୍ରମେ ସକଳ ଶାସ୍ତ୍ରରେ ନିପୁଣା ହୋଇ ପଡ଼ିଲେ । ତା ପରେ କବି ବାତ୍ସ୍ୟାୟନ ବିରଚିତ କାମସୂତ୍ରକୁ ଶଶିକଳାଙ୍କୁ ପଢ଼ାଇବାକୁ ଲାଗିଲେ; କାରଣ ସେକାଳରେ କାମସୂତ୍ର ଗୋଟିଏ ଶାସ୍ତ୍ରରୂପେ ବିବେଚିତ ହେଉଥିଲା ।

ଦିନେ ସନ୍ଧ୍ୟା ସମୟରେ ପୂର୍ବ ଦିଗ୍‌ବଳୟରୁ ଉଠି ଆସୁଥିଲେ ଆରକ୍ତ କିରଣ ଚନ୍ଦ୍ର । ପୂର୍ବଦିଗଙ୍ଗନା ମୁଖର ତିଳକ ସମାନ ଚନ୍ଦ୍ରଙ୍କର ଅରୁଣ କିରଣ ଜାଳରେ ଅନୁରଞ୍ଜିତ । ପ୍ରଦୋଷକାଳର ପରମ ରମଣୀୟ ସୌନ୍ଦର୍ଯ୍ୟରେ ଆତ୍ମବିସ୍ମୃତ ହୋଇ କବି ବିଲହ୍ଲଣଙ୍କ କଣ୍ଠରେ ଉଚ୍ଛୁଳି ଉଠିଲା ଭାଷା ଓ କବିତାର ଧାରା । ସେହି ସମୟରେ ରାଜକନ୍ୟା ପର୍ଦାର ଅନ୍ତରାଳରୁ ଚନ୍ଦ୍ରୋଦୟର ଅନୁପମ ବର୍ଣ୍ଣନାରେ ବିମୋହିତ ହେବା ସଙ୍ଗେ ସଙ୍ଗେ ମନ ତାଙ୍କର ସନ୍ଦେହାକୁଳ ହୋଇପଡ଼ିଲା । ରାଜକନ୍ୟା ଭାବିବାକୁ ଲାଗିଲେ—'କବି ଯଦି ଅନ୍ଧ ତାହାହେଲେ ସେ ଉଠି ଆସୁଥିବା ଚନ୍ଦ୍ରଙ୍କର ସୌନ୍ଦର୍ଯ୍ୟ ଦେଖିଲେ କିପରି ? ସେ କେତେ କ'ଣ ଭାବିବାକୁ ଲାଗିଲେ; କିନ୍ତୁ

ଗୁରୁମୁଖ ଦର୍ଶନ ନ କରିବା ପାଇଁ ପୂର୍ବରୁ ଶପଥ କରିଥିଲେ ସୁଦ୍ଧା ଶେଷରେ ସେ ଠିକ୍ କଲେ ପଣ ପଛେ ଭଙ୍ଗ ହେଉ, ନଷ୍ଟସ୍ବୁ ମନରୁ ସନ୍ଦେହ ଦୂର କରିବେ । ଏହା ଠିକ୍ କରି ଶଶିକଳା କଞ୍ଚୁର ପର୍ଦ୍ଦା ଆଡ଼େଇ ଦେଖିଲେ ଶିକ୍ଷକ ତାଙ୍କର ରୂପବାନ୍ ଯୁବକ । ଏଥିରେ ତାଙ୍କର ମନଟା ଭ୍ରମିଗଲା ।

କବି ବିଲ୍ହଣ ପ୍ରଥମ ଥର ପାଇଁ ନିଜର ଛାତ୍ରୀ ପରମା ସୁନ୍ଦରୀ ରାଜକନ୍ୟାଙ୍କୁ ଦେଖିବାକୁ ପାଇଲେ । ବିଲ୍ହଣ ଥିଲେ କଳ୍ପନାବିଳାସୀ କବି । କବି ସବୁବେଳେ କାବ୍ୟରେ ନୂତନତ୍ୱ ସୃଷ୍ଟି କରିବାରେ ବ୍ୟସ୍ତ । ତେଣୁ ନୂତନ ଯୌବନସମ୍ପନ୍ନା ରମଣୀର ପ୍ରଥମ ଦର୍ଶନରେ କବି ବିଭୋର ହୋଇ ଉଠିଲେ । ଶଶିକଳା ପ୍ରଥମ ଦର୍ଶନରେ କବିଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ । ନିଜେ ରାଜକନ୍ୟା - ତେଣେ ବିଲ୍ହଣ ହେଉଛନ୍ତି ଦରିଦ୍ର କବି । ତେଣୁ ନାନା ପ୍ରକାର ଚିନ୍ତା ତାଙ୍କର ମନଟାକୁ କୁହୁଳେଇବାକୁ ଲାଗିଲା । ଅଙ୍ଗର ଭୂଷଣବସନ ତଥା ଯୌବନ ଭାରି ଭାରି ଲାଗିଲା । ଦେହ ଖୋଜିଲା କାହାରି ଉପରେ ଯୌବନର ଗୁରୁଭାରକୁ ଲଦି ଦେଇ ସେଥିରୁ କ୍ଷଣକାଳ ପାଇଁ ମୁକ୍ତ ଲଭିବା ପାଇଁ । ମନ ଭିତରେ ଚିନ୍ତାଗୁଡ଼ାକ ଠେଲାପେଲା ଲାଗିଥାନ୍ତି ।

ଦିନେ ପାଠ ପଢ଼ାଇବା ସମୟରେ କବି ଭାବବ୍ୟଞ୍ଜିତ କବିତାଟିଏ ପାଠ କଲେ । କୁମୁଦ ଯଦି ଚନ୍ଦ୍ରର ସ୍ନେହସୋହାଗ ନ ପାଇଲା, ତେବେ ସେହି କୁମୁଦର ଜନ୍ମ ସିନା ବୃଥା । ଏତକ କବି କହନ୍ତେ ରାଜକନ୍ୟା ପ୍ରତ୍ୟୁତ୍ତର ଦେଇ କହିଲେ ଚନ୍ଦ୍ର, ଯଦି କୁମୁଦର ସୌନ୍ଦର୍ଯ୍ୟ ଉପଭୋଗ କରି ନ ପାରିଲା ତେବେ ସେହି ଚନ୍ଦ୍ରର ଜୀବନ ଅକାରଣରେ ବିତିଗଲା ସିନା ! ଏହିପରି ଭାବବ୍ୟଞ୍ଜିତ ବାର୍ତ୍ତାଳାପରେ କିଛିଦିନ ଯିବା ପରେ ପ୍ରଣୟ ବିଜୟୀ ହେଲା । ଧୀରେ ଧୀରେ ପ୍ରକୃତ

ପର୍ଦା ସହିତ ଲଜ୍ଜାରୂପକ ପର୍ଦା ମଧ୍ୟ ଆଡ଼େଇ ହୋଇଗଲା । ପ୍ରଣୟ-ହିଲୋର ପକ୍ଷୀଦୁଇଟି ମୁକ୍ତ ଆକାଶରେ ଉଡ଼ି ବୁଲିଲେ ।

ଧୀରେ ଧୀରେ ରାଜକନ୍ୟାଙ୍କର ସଂଭ୍ରମ ବିଭ୍ରମାଦି ପ୍ରଣୟ ଲକ୍ଷଣମାନ ପ୍ରକାଶ ପାଇଲା । ଅନ୍ତଃପୁରର ଅନୁଚରମାନେ ଶଶିକଳାଙ୍କୁ ସନ୍ଦେହ କଲେ । ପାଣିରେ ତେଲ ବିନ୍ଦୁ ପରି ସାରା ରାଜପୁରରେ ସନ୍ଦେହ ବ୍ୟାପିଗଲା । ରାଜା ଏ କଥା ଶୁଣିବାକୁ ପାଇଲେ । ସତକୁ ଆବରଣ ଭିତରେ ଲୁଚାଇ ରଖିଲେ ତାହା ଲୁଚି ରହେ ଖୁବ୍ ଅଳ୍ପ ସମୟ ପାଇଁ । ଦିନେ ନା ଦିନେ ସତ ସ୍ୱତଃ ପ୍ରକାଶିତ ହୁଏ ।

ଦିନେ କବି, ଶଶିକଳାଙ୍କୁ ପ୍ରଣୟପୂର୍ଣ୍ଣ ଉକ୍ତିରେ ସମ୍ଭାଷଣ କରୁ-ଥିଲାବେଳେ ରାଜା ହଠାତ୍ ସେଠାରେ ଉପସ୍ଥିତ ହେଲେ ଏବଂ ସକଳ ବୃତ୍ତାନ୍ତ ଜାଣି ପାରିଲେ । ପରେ ରାଜାଙ୍କର ନର୍ମମ ଆଦେଶରେ ବିଲ୍ହଣ ମୃତ୍ୟୁଦଣ୍ଡରେ ଦଣ୍ଡମାପୁ ହେଲେ । ଏଥିରେ ବିଲ୍ହଣଙ୍କ ହୃଦୟ ବିଦୀର୍ଣ୍ଣ ହୋଇଗଲା । ରାଜକନ୍ୟାଙ୍କ ହୃଦୟର କମଳମା ଉପରେ ହେଲା ତୁଷାରବର୍ଷା । ପ୍ରଣୟିନୀ ପାଖରୁ ଦୂରରେ ରହି କବି ଗୃହଆଡ଼େ ଦେଖିବାକୁ ପାଇଲେ ଶଶିକଳାଙ୍କ ମୂର୍ତ୍ତି । ଆକାଶ, ପବନ, ବୃକ୍ଷ, ଲତା ସବୁ କନ୍ଥ ଶଶିକଳା ରୂପରେ ପରିଣତ ହେଲା । ମୃତ୍ୟୁଦଣ୍ଡର କିଛିକାଳ ପୂର୍ବରୁ ବିଲ୍ହଣ ଏହି 'ଚୌରପଞ୍ଚାଶିକା' ଅର୍ଥାତ୍ 'ଚୋରର ପଚାଶଟି କବିତା' ରଚନା କରିଥିଲେ ।

ଏହି 'ଚୌରପଞ୍ଚାଶିକା' ପାଠ କରି ରାଜାଙ୍କ ମନରେ ଆସିଲା ପରିବର୍ତ୍ତନ । ରାଜା ବିଲ୍ହଣଙ୍କୁ ମୁକ୍ତ ଦେଇ ନିଜର କନ୍ୟା ଶଶିକଳାଙ୍କୁ ଅର୍ପଣ କରି ସ୍ନେହ ଅନୁବନ୍ଧନରେ କବିଙ୍କୁ ଚିରଦିନ ପାଇଁ ବାନ୍ଧି ରଖିଲେ ।

ବିଲହଣ କୃତ ଚୌରପଞ୍ଚାଶିକା ଗୀତକାବ୍ୟ ନେଇ History of Sanskrit literature ରେ *A. A. Macdonell* ଲେଖିଛନ୍ତି—

The Chaurapanchasika or "Fifty stanzas of the thief" is a lyrical poem which contains many beauties. Its author was Kashmirian Bilhana, who belongs to the later half of the eleventh century. According to the romantic tradition, the poet secretly enjoyed the love of a princess, and when found out was condemned to death. He thereupon composed fifty stanzas, each beginning with the words "even now I remember," in which he describes with glowing enthusiasm the joys of love he had experienced. Their effect on the king was so great that he forgave the poet and bestowed on him the hand of his daughter."

ମୃତ୍ୟୁ ପୂର୍ବରୁ ଜଣେ ପ୍ରଣୟୀର ମାନସିକ ପରିସ୍ଥିତି କ୍ଷୁଦ୍ର କବିତାରେ ଅଭିବ୍ୟକ୍ତ ଲାଭ କରିଛି । ଏହି କବିତାରେ ପ୍ରକୃତି-ଚିତ୍ରଣ ନାହିଁ; କାରଣ ପ୍ରଣୟବନ୍ଧରେ ତଥା ମୃତ୍ୟୁଦଣ୍ଡରେ ଦଣ୍ଡିତ କବିର ଦୃଷ୍ଟି ପ୍ରକୃତିର ବୈଚିତ୍ର୍ୟ ଆଡ଼କୁ ନ ଯାଇ ପ୍ରଣୟିନୀ ପ୍ରତି ଧାଇଁବା ସ୍ୱାଭାବିକ । ତାହା ହିଁ ଉକ୍ତ କବିତାରେ ଦେଖା ଦିଏ ।

ଅଭିମନ୍ୟୁଚନ୍ଦ୍ର ଦାଶ

ଚମ୍ପା କନକ ଗୌର ବରଣା
ଫୁଲ୍ଲ  ଅମଳ  କମଳ  ବଦନା
ନବ  ନିଦ୍ରା ତ୍ୟାଗ  ଅବଳା
ଛେଜେ ଅଳସ ମଦନବିହ୍ୱଳା

ସନ୍ଧ୍ୟା ରଶ୍ମିରେ ବିସ୍ମୃତି ଜାଲ
ଆବରଣେ
ଫେରଇ ପୁଣି ତ ଚିନ୍ତିତ ମନ
ସ୍ମରଣେ ।

ପ୍ରେମପୁରୀର  ଯଉବନ  ଶିଖି
ମରେ  ମୁଁ  ମଜନେ  ଝୁରି ଝୁରି ।

ଉନ୍ନତ ସ୍ତନୀ ନବ ଯୌବନୀ
ଚନ୍ଦ୍ର ବଦନୀ କନକ ବରଣୀ

କରିଥିବ ଫୁଲ ଧନୁଶର
ସ୍ମରୁ ତନୁ ତାର ଜରଜର

ଆଜ ଯଦ ମୁହିଁ
ଲଭିବ ତାହାର ସଙ୍ଗ
ଶାନ୍ତ କରିବ
ତପ୍ତ ଏ ମୋର ଅଙ୍ଗ ।

ପ୍ରଣୟିମା କୁଟ ଭ୍ରୁଙ୍ଗିମା
ଖିନ୍ନ କରଛୁ ଅଙ୍ଗ ଲତିକା
ତନୁରେ ଆଣିଛୁ ଭଙ୍ଗିମା
ଆଜ ଯଦ୍ଧ ଥରେ ଦେଖି ଦେବ ତାର
ଅମଳ କମଳ ବଦନ
ମଧୁକର ପରି ପିଇଯିବ ମଧୁ
ପିଆସୀ ହୋଇ ମୁଁ ଉଚ୍ଛନ୍ନ ।

କର ଭୁଜ ବାହୁ ବନ୍ଧନ
ଢାଳ ଦେଇ ଗାଢ଼ ଚୁମ୍ବନ ।

ରକ୍ତ ଗ୍ରାସେ ତାର ଅଙ୍ଗ ଲତିକା
ହୋଇ ଯାଇଥାଏ ଦୁର୍ବଳ
ପାଣ୍ଡୁ ଗଣ୍ଡେ ଝୁଲଇ ରମ୍ୟ
କୃଷ୍ଣ ଅଳକ କୁନ୍ତଳ ।
କଣ୍ଠ ଜଡ଼ାଇ କରିଥାଏ ତାର
ମୃଦୁ ବାହୁଲତା ବନ୍ଧନ
ଗୁପ୍ତ ପାପରୁ ମନ୍ତ୍ରର ଭାବ
କରେ ସଦା ଅବଲମ୍ବନ ।

ମନେ ଆସେ ମୋର ଏ ଦିନ
ତାର ସୁଡ଼ୋଳ ରମ୍ୟ ବଦନ ।

ରକ୍ତ ମନ୍ଦରେ ନିଶା ଜାଗରଣେ
ଦୁର୍ବଳ ଦିଶେ ଗାଏ
ଅରୁଣ ଦିଶଇ ଚନ୍ଦ୍ର ଜଡ଼ିତ
ତରଳ ତାରକ ନେଏ ।

ଉଜ୍ଜ୍ୱଳ ରସ ସରସୀର ଜଳେ
ହଂସୀ ଯଦ୍ୱୟେ ଖେଳେ କଲକଳେ

ସେଇ ଲଜ୍ଜା ନମ୍ର ବଦନ
ମୋର ଅନ୍ତରେ ସୃଜେ କଷଣ ।

ବିରହ ଅନଳେ ଜଳି ଯାଉଥିବ
ସୁକୋମଳ ତାର ଅଙ୍ଗ
ଆଜି ଯଦି ମୁହିଁ ଲଭିବ ପୁଣି ସେ
କମଳ ନୟନୀ ସଙ୍ଗ ।

ତନୁରେ ମୋ ତନୁ ଜଡ଼ାଇ
ଉରସେ ଉରସ ଭିଡ଼ାଇ,

କରନ୍ତି ନାହିଁ ମୁଁ ପାଶୁ ଅନ୍ତର
ଢାଳନ୍ତି କାନେ ତା ପ୍ରୀତି ମନ୍ତ୍ର,

ମୁଦନ୍ତି ନୟନ ଥରେ
ଆଜି ତାକୁ ଝୁରି ମରେ ।

ରକ୍ତ-ତାଣ୍ଡବ-　　　　ସୂକ୍ଷ୍ମ ଧାରଣୀ
ପୂର୍ଣ୍ଣିମା ନିଶି　　　　ଚନ୍ଦ୍ର ବଦନୀ

ପୃଥୁଳ ଜଘନ କୁଚଯୁଗ ଭରେ
କୃଶ ତନୁ ଟଳି ଟଳି ଗତି କରେ
ବିକସଇ ତନ ଚମ୍ପକେ

ସ୍ୱର୍ଣ୍ଣାଭ ଦୃରୁ　　　　ସ୍ୱର୍ଣ୍ଣ କୋରକ
ଦୋଳଇ କର୍ଣ୍ଣ ଅଞ୍ଚଳେ ।

ନେତ୍ର ତ ଯୌବନ ମଦ ବିହ୍ୱଳା
ଆଜି ସ୍ୱପ୍ନରେ ଭାସେ ସେ ଅବଳା

କଳା କସ୍ତୁରୀ ଧଳା ଚନ୍ଦନ
ଯାଙ୍କ ଲେପିତ ଅଙ୍ଗ
ସୌରଭମୟୀ ନୃପ ନନ୍ଦନୀ
ଲଭିଲେ ମୋର ସଙ୍ଗ

ଅଧରେ ମିଳିବ କାଂପ୍ର ଅଧର
ବକ୍ଷ ମିଳିବ ବକ୍ଷେ
ଚଳ ଚଞ୍ଚଳ ମୃଗଧ ଚରଣ
ଚକ୍ଷୁ ମିଳିବ ଚକ୍ଷେ ।

ଏତେ ଦିନ ପରେ     ମନେ ପଡ଼େ ମୋର
ଗୁପ୍ତ ପ୍ରଣୟ କୀର୍ତ୍ତି
ଚିତ୍ତ ବିମୋହିନୀ     ନୃପ ନନ୍ଦିନୀ
ମୁଗ୍ଧ ମଧୁର ମୂର୍ତ୍ତି
ସ୍ନିଗ୍ଧ ଆସବେ     ଦଗ୍ଧ ତାହାର
ମୁଗ୍ଧ ଅଧର ବେନି
ଶିରେ କୁଂକୁମ,     କଳା କସ୍ତୁରୀ
ଅଙ୍ଗେ ଥାଏ ସେ ଘେନି

ଲପନ ଦିଶଇ ରକତ ବରଣ
ଭୁଞ୍ଜଇ ପୂଗ କରପୂର ପାନ
ଚପଳ ଆପ୍ଲୁତ ଅକ୍ଷୀ
ହୋଇଛୁ ମାନସ ପକ୍ଷୀ ।

---

ଆସବ—ମଦ୍ୟ, ଦଗ୍ଧ— ଦୋଳା, ପୂଗ—ଗୁଆ
ଲପନ—ମୁଖ ।

ତପ୍ତ କନକ ଗୌର ବରଣା
ସ୍ୱେଦ ଜଳକଣା ଭୂଷିତ ବଦନା

ପରାଗ ମୁକୁତ ବିଧୁ ମଣ୍ଡଳ
ସଂକାଶ ତାର ବଦନ ବିମଳ
ରତି କେଳି ପରେ ସ୍ମିତ ତା'ର
ନେହ ସୁଷମା ରାଜି

ଘର୍ଷ ବିରହେ ସ୍ମରଣ କରେ ମୁଁ
ନୃପ ନନ୍ଦିନୀ ଆଜ ।

ଧୂଇଙ୍କ ଭିତରେ          ଲୁଣସ୍ନ କଳଙ୍କ
ଲାଗି ଯାଇଥିଲା ବାରେ
ଆଜି କି ସେ କଥା          ନିରବଧି ମୋର
ନରମ ମରମ ଘାରେ ।

ଛୋଟଥିଲି ଥରେ ଅଳସ ହାଇ
ନଇଳା ଚତୁଷ୍ପ ଶୁଣିଲି ନାହିଁ

ଜୃମ୍ଭଣେ 'ଜୀବ'          ପଦଟି କହିଲେ
ମୌନ କି ହେବ ଖଣ୍ଡନ
ନାସ୍ତ୍ରିକୁହରେ          କଳଅର ଫୁଲ
କରିଥିଲି ଆଣି ମଣ୍ଡନ ।

---

ଜୃମ୍ଭଣ— ହାଇ; ହାଇ ମାରିଲେ ମଙ୍ଗଳାଭିଳାଷୀ ବ୍ୟକ୍ତି ଜୀବ ବୋଲି କହିଥାଏ ।

ବିପଣୀର ରଙ୍ଗ ଶପରେ
ସେ ତ ମରି ଯାଇଥିଲା ଲାଜରେ ।

ତାର ବାହୁ ଧରିଥିଲି କରଷି
ବାଳା ଲୋଟି ଯାଇଥିଲା ଝରସି ।

ବିନ୍ଦୁ ବିନ୍ଦୁ [illegible] ନିଳ କଣାରପେ
ଶୋଭିତ ତାର ବଦନ
ମୁକ୍ତା ଫଳ କି [illegible] ବିଚ୍ଛୁରି ପଡ଼
କରୁଥିଲା ମନ ହରଣ ।

ଆଜି ଭାସଇ ତା ରୂପ ନୟନେ
ମୁହିଁ ଭାବଯାଏ ତାକୁ ବିଜନେ ।

ଅରୁଣ ଦଶଇ ନଖର ଛୁନ୍ଦ
ଜରଜ ଆଜ
ଅଧରେ ଫୁଟଇ ଦଶନ ଚନ୍ଦ୍ର
ସରମ ତେଜ ।
ରତି ସମ୍ଭ୍ରମେ ଖସି ପଡ଼ଥାଏ
ପ୍ରିୟତମା ଝୀନ ବସନ
ଭ୍ରୂରୁ ଅବୟବ ଚଞ୍ଚଳ ଦଶେ
ମଦଭଙ୍ଗିଳ ନୟନ ।

ଆଜ [illegible] ରସ ସୁଷମା
ମୁଁ [illegible] ଉପମା ।

---

ଦଶନ—ଦାନ୍ତ

ନବ ପଲ୍ଲବ
ରକ୍ତ ଅଶୋକ
ଧରି ସେ ଢଳଇ ବ୍ୟଗ୍ର
ଶୁଭ୍ର ମୁକ୍ତା
ଫଳ ଚୁମ୍ବଇ
ତାର ପୟୋଧର ଅଗ୍ର ।

ଅନ୍ତର ସ୍ମିତ                ଉଚ୍ଛ୍ୱସିତ ତା ହାସ୍ୟ
ଜଳସାଇ ଦିଏ                ପାଣ୍ଡୁ ଗଣ୍ଡ ଆସ୍ୟ
ପ୍ରିୟତମା ମୋର                ଅଳସ ହଂସ ଗମନା
ନରଜନେ ଆଜ                ଅନ୍ତରେ କରେ ଘଟନା ।

---

ଆସ୍ୟ—ମୁଖ

ନୃପ–ନନ୍ଦନା ଘନ ଜଙ୍ଘୁ ଦେଶେ
କନକ କେତକ ରେଣୁ
ନଖର ଛିନ୍ନ ଅଂଗ ସୁଷମା
ଭୁଲି ନ ପାରଇ ମନୁ

ରକ୍ତ ସଂଭ୍ରମେ ହେମ ଅମ୍ବସ୍ତ
ଯାଉଥିଲା ଉଠି ପାଶୁ ମୋର
ଲଜ୍ଜିତା ବାଳା ଛନ୍ଦେ ଗଲା ତ
ଧରବାରୁ ମୁହିଁ ଭାର କର ।

ଉଜ୍ୱଳ କଳା-　　କଜ୍ୱଳେ ବାଳା
ନେତ୍ର ଢଳଇ ଚଞ୍ଚଳ,
ଚର୍ଚ୍ଚିତ ଗୁରୁ　　ପୁଷ୍ପ ବୀଥିକା
ରଂଜଇ କେଶ ଅଞ୍ଚଳ,

ଶିର ସିନ୍ଦୂରେ　　ରକ୍ତିମ ଦେଦଶେ
ବକ୍ଷ ମୁକୁତା ହାର
ରୁଚିର ସ୍ୱର୍ଣ୍ଣ　　କଂକଣ ରାଜେ
ମଣି ବନ୍ଧନେ ତାର ।

ଆଜ ଧର୍ମ୍ମ ଢରନ୍ଧ କଷଣେ
ମୂର୍ତ୍ତି ଖସ ଯାଏ ତାକୁ ମଣ୍ଡନେ ।

ଗଳାର ରମ୍ୟ
ପୁଷ୍ପର ମାଳା
ମୁକୁଳିତ କେଶ ବନ୍ଧନ
ମୁକ୍ତା ଆବଳୀ
ଉନ୍ନତ କୁଚ
ଅଗ୍ର କରଇ ଚୁମ୍ବନ

ତାର ଦରହାସ ସୁଧା ଅଧର
ଆଜ କରୁଅଛୁ ମୋତେ ଅଧୀର ।

ଧବଳ ନଳସ୍ରେ    ରଞ୍ଜନ ପ୍ରଦୀପ ମାଳ
ନାଶେ ଅନ୍ଧାର    ଝଲ୍କୁର କରଣ ଜାଳ
ରହ୍ନ କରଣ    ଉଜ୍ଜ୍ୱଳତାରେ
ଦେଖିଲି ମୁଁ ତାର ବଦନ

ଦିଶୁଥିଲା କେତେ    କମନୀୟ ତାର
ଲାଜଭରା ମୀନ ନୟନ

ଆଜ ଧର୍ଷ ଝରନ୍ତ କଷଣେ
ମୁହିଁ ଭାବପାଏ ବସି ଗୋପନେ ।

ଶରଦ ବସ୍ତ୍ର ପୀଢ଼ତ ଅଂଗୀ
ତନ୍ୱୀ ହରିଣ ନୟନା
ଦିବ୍ୟ ଭୂଷଣେ ମଣ୍ଡିତ ତନୁ
ଅଳସ ହଂସ ଗମନା ।

ମୋର ରତି ରସ ପାଇଁ
ସେ ପରା କେବଳ ସୃଜନ
ଆଜ ସ୍ୱଜନେ ଭାବଇ
ବସି ମୁଁ ତାହାର ଦର୍ଶନ ।

କୁଚ ଯୁଗରେ ଦଶେ ନମ୍ର
ଏସି ଦଏ ବାଳା କମ୍ର

ମୁକ୍ତା କଳାପେ ଧବଳ କଣ୍ଠୀ
ପ୍ରଣୟୁ ଶଇଳ ଅଞ୍ଚଳେ
ଧୃଷ୍ଟ ଶାମ୍ବୁକ (୧) ବୃନ୍ତ ଉଜ୍ଜ୍ୱଳ
କେତନ ଉଡ଼ଇ ଚଞ୍ଚଳେ ।

ତାର ଛବି ଭାସିଯାଏ ନୟନେ
ଆଜ ଭାବଇ ମୁଁ ତାରେ ନିର୍ଜନେ ।

୧ ମକର

ରତି ରସ ପରେ କ୍ଳାନ୍ତ ଆକୁଳ
ଉଚ୍ଛଳିତ ତା ବଚନ
ବଥର ବଥର ଭାସେ ସ୍ଫୁଟ୍ କଥା
ଶୁକ ପକ୍ଷୀର ସମାନ

ଆଜ ମନେ ପଡ଼େ ମୋର ସେ ଦିନ
ତାର ମଧୁବୋଳା ସ୍ଫୁଟ ବଚନ ।

•

ରକ୍ତ ମନ୍ଦାରୁ ଲଜ୍ଜିତା ବାଳା
ଖସି ଯାଉଥିଲା ତୂର୍ଣ୍ଣ
ଅଞ୍ଚଳ ଭିଡ଼ି ନେଲେ ପକାଇ
ଦେଲି ମୁଁ ସୁରକ୍ତ ଚୂର୍ଣ୍ଣ ।

ନିସ୍ତେଜ ତାର ଅଙ୍ଗ ସୁଷମା
ମୁକୁଳିତ ଉର କବରୀ
ରକ୍ତ ପଙ୍କଜ- ସରେ ସନ୍ତରେ
ମରାଳୀ ପରାୟେ ଉଚ୍ଛଳ ।

ଆଜି ଭାସଇ ତା ଛବି ନୟନେ
ମୂର୍ଚ୍ଛି ଭାବଯାଏ ତାକୁ ଭଜନେ ।

---

ତୂର୍ଣ୍ଣ—ଶୀଘ୍ର

୨

ପ୍ରଣୟିନୀ ମୋର
ବକ୍ଷେ ବାନ୍ଧଇ
ଅମୃତ ଭରା କଳଶ
ହରିଣ ଶାବକ
ଅକ୍ଷେଣୀ ଚଳେ
ଗମନ ମନ୍ଦ ଅଳସ ।
ଆଜ ଯଦି ଥରେ
ମଧୁ ସନ୍ଧ୍ୟାରେ
ଦେଖିବ ପ୍ରିୟାର ତନୁ
ସରଗ ମୁକ୍ତି,
ନର ରାଜ ସୁଖ,
ଭୁଲିଯିବ ହେଲେ ମନୁ ।

ପୃଥ୍ୱୀ ଭିତରେ ହୁଅନ୍ତି ଯେତେକ
ବର ସୁନ୍ଦରୀ ଦେଖା
ଶୋଭନ ଅଙ୍ଗୀ ପ୍ରିୟତମା ମୋର
ତନ୍ୱୀଟି ପ୍ରଥମ ରେଖା

ରତି ଅଭିନୟ ରଙ୍ଗମଞ୍ଚେ
ସେ ପରା ଆଦ୍ୟ ନାୟିକା
ପୁଷ୍ପଶାୟକ(୧) ଶର ଆଶୁଗେ(୨)
ଛିନ୍ନ ଅଙ୍ଗଲତିକା ।

ତାର ଛବି ଭାସି ଯାଏ ନୟନେ
ଆଜ ଭାବ ଯାଏ ତାକୁ ମନନେ ।

---

(୧) ମଦନ, (୨) ବାଣ

ଛାତ୍ର ମଦନ- ଅନଙ୍ଗଚମ୍ପା
ନୃପତିଶେଖର କନ୍ୟା
ପ୍ରାଣରୁ ଅଧିକ ଦୟାର ପାଣି
ଅନାଥଶରଣା ଧନ୍ୟା

ବସନ ପରି ମୋ ଶରୀରେ
ସେ ତ ଲାଗି ରହିଥାଏ ଅଧୀରେ
ସ୍ୱର୍ଗ ଦିନର ମଧୁ ବନ୍ଧନ
ଛିନ୍ନ ନ କରି ତାରେ ମୋର ମନ

ମନେ ଭାସଇ ପୂରୁବ କୀରତି
ତାର ଅତୁଳ ଗୁପତ ପୀରତି ।

ମନୋହର ବର ସୁନ୍ଦଶ୍ୱଗଣେ
କୀର୍ତ୍ତିତ ତାର ମୂର୍ତ୍ତି
ରଚଇ ବନ୍ଦନା ପ୍ରତିକୃତି ଯାର
ସେଇ ତ ସେନେହ୍ୱପାଶୀ ।

ଦୁଃସହ ତାର ଶରହ୍ନକଷଣ
ଜାଳଇ ନରତ ଦଗ୍‌ଧ ପରାଣ
ହାଇରେ ହାଇ
ଶରମ ନାହିଁ ।

ଏତେ ଦିନ ପରେ ଗୁପ୍ତ ପ୍ରଣୟ
ପଡ଼ିଅଛି ମୋର ଧରା
ଜାଣୁ ଅଛି ଭଲେ ମରଣର ଦିନା
ଆନ ପଥ ନାହିଁ ପରା ।
ସ୍ୱଭାବସୁଧୀରା ପ୍ରିୟତମା ମୋର
ରହିଲଣି ବହୁ ଦୂରେ
ନୃପତିଶାସନ ମୃତ୍ୟୁବାରତା
ବାଜଇ ଶ୍ରବଣପୁରେ ।
ଅନ୍ତିମ କାଳେ ଦେବଦେବୀ ନାମ
ହରଷେ କରି ମୁଁ ବର୍ଜନ
ପ୍ରଣୟିନୀ ନୃପ- ନନ୍ଦିନୀ ନାମ
କରିବି ସତତ କୀର୍ତ୍ତନ ।

ପରିହାସଛଳେ କହିଥିଲି ଥରେ
ଉତ୍ତରତ ତୋ ଗମନ
ନୃପନନ୍ଦନୀ ପ୍ରଣୟିନୀ ମୋର
ଶୁଣିଲ ରୁକ୍ଷ ବଚନ ।

ବନବିହାରିଣୀ ମୁଗ୍ଧ ହରିଣୀ—
ସଂକାଶ ସ୍ୱରୁ ଚକିତ ନୟନା
ନୟନୁ ବରଷି ଅଶ୍ରୁ ଜଳ
କମ୍ପନ ରତ କମ୍ର ଅଧରେ
କଣ୍ଠ କରିଲା ବାଷ୍ପାକୁଳ ।

ଦିଶୁଥିଲା କେତେ ଶୋଭନ
ତାର ସଗଜରଜର ବଦନ
ଅଶ୍ରୁଭରେ,
ଚନ୍ଦ୍ରାକରେ ।

ବହୁତ କଲେହେ ଯତନ
ପ୍ରେୟସୀ ରମ୍ୟ ବଦନ
ଦେଖଇ ନାହିଁ
କେଉଁଠି କାହିଁ ।

ରତ୍ନନର୍ଜିତ ଚନ୍ଦ୍ର ଝଙ୍କତ
ଝମକ ଗୁଣରେ ଯାର
ଘଦେଁ ଝରହେ ନେଷେ ନାଚଇ
ରମ୍ୟ ମୁଖଟି ଛାର ।

କ୍ଷଣ ବିଚ୍ଛେଦ                    ହଳାହଳ ସମ
ସଙ୍ଗମ ତାର                     ଅମୃତୋପମ
      ମୋର ଜୀବନ ଧାରଣ କାରଣୀ
      ସେ ତ କୁଞ୍ଚିତ କେଶ ଧାରିଣୀ ।

ପାଶେ ଥିଲେ ପ୍ରିୟା
          ଫୁଲଶର କେତେ ମାତର
ଜାମ ସନ୍ତାପ
          ନିବାରଣେ ପର
               ପ୍ରେୟସୀ ଆତପତର । (୧)

୧—ଛତା

ଯମଦୂତ ପରି ରାଜ ଅନୁଚର
ଅତି ଦୁର୍ବାର କରେ
ଯେତେବେଳେ ମୋତେ ନିଜଘରୁ ଆସି
ଧରି ନେଇ ଗଲେ ଖରେ ।

ସେତିକି ବେଳେ ତୁ ନୃପନନ୍ଦନ
କି ଅବା ନ ଥିଲୁ କରି
ଗୋଟି ଗୋଟି ତୋର କୀର୍ତ୍ତିକଳାପ
ନାହିଁ ଯାଏ ମନୁ ମରି ।

ମନ ନାହିଁ ମାନେ ବାରଣ
କୁହୁଳେ ଦଗ୍‌ଧ ପରାଣ ।

ବନ୍ଧୁ ଘନ ଧର ଦର୍ଶନ କର
ନାହିଁଟି ପ୍ରେୟସୀ
ପୂର୍ଣ୍ଣିମାବଧୂବଦନ

ଶୋଭା ନର୍ତ୍ତିଛ ଚନ୍ଦ୍ର ଗଣ୍ଡସ୍ଥ
ବିଚ୍ଛେଦ ହୋଲେ
ହୃଦୟେ ଅପାର କଷଣ ।

ଭରା ଯଉବନା ଜହ୍ନଚନ୍ଦ୍ରମା
ଜୀବନର ଗନ୍ତି ଭରସା
ହୃଦୟ ଗହନ ଘାରଇ ନିରନ୍ତ
ପ୍ରବଳ ପ୍ରଣୟ ତୁରୁଷା (୧)।

ଆଜ କେନ୍ହି ନୂହେଁ ପିଇଛି ମୁଁ ତାର
ପୀରତି ମଦର ଧାର
ଦୁଃସହ ଘୋର ବିରହକଷଣ
ଘାରୁଛି ଅଙ୍ଗାର ।

ବେଦନା ଜାଣି ପରାଣେ
ଆଜ ଝଝଯାଏ ତାକୁ ଝଜନେ ।

---

୧—ତୃଷା

ମୁଖପଙ୍କଜ ସ୍ନିଗ୍ଧ ମନ୍ଦର—
ଗନ୍ଧ ଲୁବ୍ଧ ଭ୍ରମର
ଚୁମ୍ବିଲେ ଆସି ଗାଣ୍ଡୁ ଗଣ୍ଡ
କୁଞ୍ଚିତ କେଶ ଆବର ।

ଭୃଙ୍ଗ ଉଡ଼ାଇ ସଂଯତ କଲେ
କୃଷ୍ଣ ଅଳକ,
କର କଙ୍କଣ ଉଠଇ ବାଜ

ରୁଣୁ ଝୁଣୁ ଝୁଣୁ ହେମ କଙ୍କଣ
ମଧୁ ନିଃସ୍ୱନ
ମୂର୍ଚ୍ଛା ଢୋଳଇ ପବନେ ଆଜ ।

ମୁଖମଧୁ ପାନ ଲୋଭରେ
ମୁଁ ଛ ନଖ ଲୁକ ନାହିଁ କୁଚରେ
ଚେଇଁ ଶୋଇଥିଲି ପ୍ରେୟସୀ
ଶିହରଣ ଗଲି ପରଶି

ଲୋମ ହର୍ଷଣ
ମୃଦୁ କମ୍ପନ
ଖେଳିଗଲି ଅପଘନେ
ଲୁହିଁ ଦେଲି ନମୀଳନେ ।

ଆଜି ଭାବଇ ବସି ସେ ମୂରତି
ମୋର ଅଭୁଲା ଗୃପଚପୀରତି ।

ସଗ ଜର ଜର          ଅରୁଣ ବଦନା:
ଝୁଲ ଯାଏ ଯଦ          ମୌନ ବଚନା,
ଅଶ୍ରୁ ଝରାଇ          ଚରଣପଦ୍ମ
ଧରି କହୁଥିଲ ବାଣୀ

ଚରଣସେବକ          ଜନେ କୃପାକର
ପରାଣ ପୀରତି ରାଣୀ ।

ସ୍ୱପ୍ନ ସୁଖରେ ଭାସି ବୁଲେ ମନ
କି କରିବି ମୁହିଁ ଉପାୟ ବିଧାନ
ଲଭିବି ସନ୍ଧି ମୁଁ ପ୍ରେୟସୀ ସଙ୍ଗ
ପୁଲକ ଉଠିବ ବ୍ୟଥିତ ଅଙ୍ଗ ।
ନର୍ତ୍ତନ ଛାନେ କୌତୁକ ରସେ

ରସାଳ ଶତ୍ରୁ ଗହନ
ରଙ୍ଗମଞ୍ଚରେ ପ୍ରିୟାରେ ଭାଷନ୍ତୁ
କେତେ ପରିହାସ ବଚନ ।

ଚିର ସୁନ୍ଦରୀ   ପ୍ରେୟସୀର ମୋର
ରୂପ ବର୍ଣ୍ଣନା କରିବା ପାଇଁ
ସେ ରୂପ ସଦୃଶ   ରୂପଟିଏ କାହିଁ
ପୃଥିବୀଭିତରେ ପାଏ ତ ନାହିଁ ।

ଶଚୀପତି ଅବା   ପାରିଥିବେ ଦେଖି
ପ୍ରେୟସୀର ଭୁଲ ରୂପ ଶିଖି
ସହସ୍ର ନୟନେ,   ବାସବ କି ଅବା
ଗାଉନ୍ତି ସେ ରୂପ ଗାନ କରି ।

ଇନ୍ଦ୍ର ଶାପରେ ସ୍ୱର୍ଗୁଁ ପତିତ
ପାଙ୍କଶ୍ଚ କି ସେ କମଳା
ମୁଗଧ ମୋ ମନ ଚିହ୍ନି ନ ପାରେ
ନବଯୌବନା ଅବଳା ।
ଯୁବକ୍ଷରନ୍ଧ୍ର ଦର୍ଶନ ଆସେ
ଧାତା କଲେ ତାଙ୍କୁ ସର୍ଜନ
ଚଉଳ ଚପଳ ଯୁବଜନ ମନ
ପଲକେ କରୁଛି ରଞ୍ଜନ ।

କଳା କଜ୍ଜଳେ ଉଜ୍ଜ୍ୱଳ ମୁଖୀ
ଉନ୍ନତ କୁଚଯୁଗରେ
କର୍ଣ୍ଣଯୁଗଳ ଥାପି ରଖିଥିଲ
ଥରେ ପବିତ୍ରାସସ୍ଥଳରେ ।
ପ୍ରଣୟସ୍ୱପ୍ନଘୋର ପ୍ରଣୟିନୀ ମୋର
ହସିଲ ଦେଖାଇ ଈଷତ ରୋଷ
କୁସୁମକୋମଳ ଅବଳା ଶରୀର
ଧ୍ୱଂସ ଲଭିଲେ ଅଛୁ କି ଦୋଷ ।

ଶାରଦୀୟ ଶଶୀ-　　　ଗୌର ବରଣ
ମୁନିଜନ ମନ　　　କରଇ ହରଣ ।
ମୋ ପରି ଇତର ଜନର ମନ
ନ କରିବ ବାଳା କାହିଁ ହରଣ ।

ଢଳ ଢଳ ସ୍ଫୁର　　　ବଦନ ତାହାର
ଲଭିବ ପଛ ମୁଁ ଥରେ
ଭାଳି ଚୁମ୍ବନ　　　ପିଇଯିବ ମଧୁ
ପରମ ପୁଲକ ଭରେ ।

ସଜ ସରସିଜ-        ପରାଗ ଗନ୍ଧ
ସମ ସୁବାସିତ ପ୍ରଣୟସୁବାର
ଲଭିବ ଯଦ ମୁ        ସୁରତତୀର୍ଥ
ମଦନ ପାତକ ଧ୍ୱଂସକାରୀ

ପୀରତତୀର୍ଥେ ତେଜବ ପରାଣ
ଆଗାମୀ ଜୀବନେ ଲଭିବ ମିଳନ ।

ଏକଇ ଚନ୍ଦ୍ର ସୁନ୍ଦର ଗଗଣେ
ଅଗରେ କରଇ ସ୍ନାନ
ନକ୍ଷତ୍ରର ଖଣ୍ଡ ସଂସାରେ ଏଥା
ଲାଗିଅଚ୍ଛି ଢନୁ ଢନ ।
ସମଧିକ ଶୋଭା ସଂପଦେ
ଯିଏ ଭୂଷିତ
ପ୍ରିୟତମା ରୂପସଂପଦେ
ନମଇ ଲଜ୍ଜିତ ।
ମୋର ପ୍ରିୟତମା-ସୁଷମା
ଚିନ୍ତା ନ ପାଏ ଉପମା

ମାନସରଞ୍ଜିମା ପଦ୍ମମଳ ଜଳେ
ହଂସୀ ପରି ସେ ଖେଳେ କଳକଳେ

ଚଳ ଚଂଞ୍ଚଳ          ଉର୍ମି ପରସ୍ପେ
ଖେଳିଯାଏ ଲୋମ ହର୍ଷଣ
ପଙ୍କଜ ରେଣୁ          ବକ୍ଷର ପଡ଼ି
କ୍ଷତ ହୁଏ ମୋର ଈକ୍ଷଣ ।
ମନେ ପଡ଼ିଗଲେ          ପୂର୍ବ କାରଣ
ମାନସେ ଖେଳଇ ସ୍ପନ୍ଦନ
ସାର୍ଦ୍ଧ ବିରହେ          ଦଗ୍ଧ ପଞ୍ଜରେ
ଖେଳି ଉଠେ ଘନ କଂପନ ।

ନୃତ୍ୟନନ୍ଦନୀ ଭର ଯୌବନା
ମଦିର ଅଳସ ନୟନା
ସ୍ୱର୍ଗପୁରରୁ ମର୍ତ୍ତ୍ୟେ କି ଅବା
ହୋଇଅଛୁ ଅବତୀର୍ଣ୍ଣା ।
ସୁର କିନ୍ନର, କିବା ନାଗବାଳା
କି ଅବା ଯକ୍ଷ ଯୁବତୀ
ହସାଏ ରସାଏ ସକଳ ପ୍ରାଣ
ଲଗାଇ ପଲକେ ପୀରତି ।

ସୁଧା ସଞ୍ଚିତ          ଉତ୍ତୁଙ୍ଗ ତାର
ବର୍ତ୍ତୁଳ କୁଚକଳଶ
ତନ୍ଦ୍ରା ତଆଗି          କୁଣକଣ୍ଠୀ ବାଳା
ମଧୁରେ ସ୍ୱାଙ୍ଗେ ଅଳସ
ସ୍ୱର୍ଣ୍ଣ ଭୂଷଣେ          ଝଲସେ ଅଂଗ
ରଞ୍ଜିତ ତାର ତନୁ
ଷବସ ରଜନୀ          କନକ ଗୋସାଙ୍କୁ
ପାଶୋରିବ ନାହିଁ ମନୁ ।

କନକ କାନ୍ତ            ମଦାଳସ ଛନ୍ଦ
ଲଜ୍ଜାଭରେ
ନୃପନନ୍ଦନୀ            ପଡ଼ସିବ କାଳେ
ଚୋଳି ମୁଁ ଧରେ
ଅଙ୍ଗେ ଅଙ୍ଗ            ଲଭଇ ସଂଗ
ମୋହ ସୃଜେ ମୋର ଚୁମ୍ବନ
ଦଗ୍ଧ ଜୀବନ-            ଔଷଧ ବାଳା
ହୃଦୟେ ହୁଅଇ ଶମ୍ବନ ।

କେଳିମନ୍ଦିରେ ଗୁପ୍ତ ପ୍ରଣୟ
ରତିସ୍ୱପ୍ନ ହାସ ଘାରଇ ମନ
ଲଜ୍ଜଭଙ୍ଗା ଚଳନ୍ ମଧୁର ପରଶ
ଆଲୁଳିତ କେଶଧାରଣ

ନଖେ କ୍ଷତ କୁଚ, ରକ୍ତସିକ୍ତ
ଦଶନେ ଲାଞ୍ଛିତ ଅଧର
ମନେ ପଡ଼େ ଆଜ ନୃପନନ୍ଦିନୀ
ଇଷ୍ଟ ବଁଧୁର ନିଠୁର ।

ନିବାରି ନ ପାରେ          ନୃପ ନନ୍ଦିନୀ
ଧର୍ମ ଶରୀର କଷଣ
ଦୁଃସହ ହୁଏ          ଜୀବନ ଧାରଣ
ବରଣ କରଇ ମରଣ

କିନ୍ତୁ ଅଛି ହୃଦ ବନ୍ଧନ
କରି ଯାଇ ଶିରଚ୍ଛେଦନ ।

ଫଳକେ ପିଇଲେ ଶଙ୍କର ଧନେ
ଅର୍ଣବଜାତ ଗରଳ
ସିନ୍ଧୁ ରଖିଛୁ ଗରଭେ ଲୁଚ୍ଛଇ
ତୀବ୍ର ବାଡ଼ବ ଅନଳ
କୂର୍ମ ରୂପରେ ହର କରିଛନ୍ତି
ଧରଣୀର ଭାର ବହନ
ସେହ୍ନ ଧନୁ ଧରି କିଏ ସେ କରିଛୁ
ପରିହାର କା'ର ବଚନ ?

ପଣ୍ଡିତ ଜନ ଥରୁଟିଏ କରି ଅଙ୍ଗୀକାର
କହିଲା କଥାକୁ କରିଅଛୁ କାହିଁ ପ୍ରତ୍ୟାହାର
ତେଜବ କପରି ଗଲେ ଯାଉ ପଛେ ଜୀବନ
ଦେଇ ମନ ପ୍ରାଣ କରିଛୁ ମୁଁ ତାରେ ବରଣ ।

—:୦:—